# ନିଶୀଥ ସୂର୍ଯ୍ୟ



ଶ୍ରୀ ଉଦୟ ନାଥ ମହାପାତ୍ର

## —ଉତ୍ସର୍ଗ—

ମୋର ପରମାରାଧ୍ୟ ସ୍ୱର୍ଗତ ପିତୃଦେବ ଦଣ୍ଡପାଣି ମହାପାତ୍ରଙ୍କ ଚରଣ କମଳରେ ଏଇ ପ୍ରଥମ ମାନସ ସଂତାନକୁ ଗଭୀର ଭକ୍ତିର ସହ ସମର୍ପଣ କଲି ।

ଇତି

ଭବଦୀୟ ଅଧମ ସଂତାନ

**ଶ୍ରୀ ଉଦୟନାଥ ମହାପାତ୍ର**

# ନିଶୀଥ ସୂର୍ଯ୍ୟ

ଲେଖକ : **ଶ୍ରୀ ଉଦୟ ନାଥ ମହାପାତ୍ର**
ସ୍ୱର୍ଣ୍ଣମୟୀ ନଗର-୨
ବ୍ରହ୍ମପୁର, ଗଂଜାମ
ପିନ୍ ୭୬୦୦୦୧

ପ୍ରକାଶିକା : **ଶ୍ରୀମତୀ ବାସନ୍ତୀ ମହାପାତ୍ର**
ସ୍ୱର୍ଣ୍ଣମୟୀ ନଗର-୨
ବ୍ରହ୍ମପୁର, ଗଞ୍ଜାମ
ପିନ୍ ୭୬୦୦୦୧

ମୁଦ୍ରଣ : **ଆମର ପ୍ରେସ୍**
ଭଞ୍ଜପୁର
ବ୍ରହ୍ମପୁର, ଗଂଜାମ

ମୂଲ୍ୟ ଟ ୧୦ ( ଦଶଟଙ୍କା)

# ଅଭିମତ

ବରିଷ୍ଠ କବି ଶ୍ରୀ ଉଦୟ ନାଥ ମହାପାତ୍ରଙ୍କ 'ନିଶୀଥ ସୂର୍ଯ୍ୟ' କବିତା ଗ୍ରନ୍ଥ ପଢ଼ି ଅତ୍ୟନ୍ତ ଆନନ୍ଦିତ ହେଲି । ଜଣେ ଅଗ୍ରଜ କବି ଭାବରେ ଶ୍ରୀ ମହାପାତ୍ରଙ୍କର ସୁଖ୍ୟାତି ରହିଛି । ଜୀବନର ଆବେଗ ଓ ଅନୁଭୂତିକୁ ନେଇ ସେ ଭାବସ୍ୱରୂପ ଚେତାରେ ଆପଣାର କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ତାହାଙ୍କର କବିତାରେ ମାତୃଭୂମି ପ୍ରତି ମମତା ସ୍ତରେ ସ୍ତରେ ପରିଲକ୍ଷିତ । ଜୀବନକୁ ଏକ ବୃହତ୍ତର ପୃଷ୍ଠଭୂମିରେ ଦେଖିବାର କ୍ଷମତା କବିଙ୍କର ରହିଛି । ଭାବ, ଭାଷା ଓ ପ୍ରକାଶ ଭଙ୍ଗୀ ଦୃଷ୍ଟିରୁ କବିତାଗୁଡ଼ିକ ସରଳ, ସାବଲୀଳ ଏବଂ ସୁଖପାଠ୍ୟ । ଏକ ଗୀତିଧର୍ମୀ ଆବେଦନ କବିତାଗୁଡ଼ିକୁ ପାଠକର ନିକଟବର୍ତ୍ତୀ କରିଛି । କବିଙ୍କର କବିତା ରଚନା ନିଷ୍ଠାକୁ ମୁଁ ସମ୍ମାନ ଜଣାଉଛି । ଶ୍ରୀ ମହାପାତ୍ର ଜୀବନର ପରିଣତ ବୟସରେ ଏପରି ସାରସ୍ୱତ ସେବା ସଂସାରରେ ମନୋନିବେଶ କରି ଓଡ଼ିଆ ବାଣୀ ଭଣ୍ଡାରକୁ ସମୃଦ୍ଧ କରନ୍ତୁ ।

**ଗୌରୀବଂଧୁ କର**
ପ୍ରଫେସର, ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

# ମୋ କବିତା ମୋ ଜୀବନ



ମୋ ଗାଆଁର ନଈ ଗଡ଼ିକୂଳର ସ୍ନିଗ୍ଧ ବେଳାଭୂମି, ଗୋଚାରଣ, ମୁକ୍ତ ଗଗନ, ଜଙ୍ଗଲାଞ୍ଚଳ ପରିବେଶର ମନୋରମ ଛବି ମୋତେ କବି ହେବା ପାଇଁ ପିଲାଦିନରୁ ମୋ ମନରେ ବାସନା ଉଦ୍ଦୀପିତ କରିଥିଲା । ପିତୃଦେବ ନନାଙ୍କ ପଦତଳେ ବସି ମହାଭାରତ, ଭାଗବତ, ଧ୍ରୁବଚରିତ, ମୋର ପିଲାଦିଆ କଂଠରେ ଗାଉଥାଏ । ତାଙ୍କର କଳ୍ପନା ଥିଲା ମୋ ପୁଅ ପଣ୍ଡିତ ହେବ । ହେଲେ ତରୁଣ ଶିକ୍ଷକ ଜୀବନରେ ବହୁ ଘାତପ୍ରତିଘାତ ମୋ କଳ୍ପନା ମାନସରେ ନାଚିଲେ । ସେ ସମସ୍ତ ସୃଜନଶୀଳ ପ୍ରବୃତ୍ତିକୁ ମୁଁ କବିତା ଆକାରରେ ସାହିତ୍ୟ ପାଖରେ ପରିବେଷଣ କରିଛି । ୧୯୮୩ ଠାରୁ ବର୍ତ୍ତମାନ ୧୯୯୯ ଯାଏଁ ମଫସଲର ନିରନ୍ତର ସାଧନାରେ ମଗ୍ନ ହୋଇ ମନୋରଞ୍ଜନ-କଳା-ସାହିତ୍ୟ-ସଂସ୍କୃତିର ମୁଖ୍ୟକେନ୍ଦ୍ର ଭାବେ ସେ ସମସ୍ତ ଭାବକଳ୍ପ ସାହିତ୍ୟର ସୃଷ୍ଟିକୁ ମୁଁ "ଦକ୍ଷିଣାବର୍ତ୍ତ," "ନବାକ", "ବାସ୍ନ୍ଦା", ରାଜ୍ୟସ୍ତରୀୟ ଲେଖକ ସମାବେଶ ସ୍ମରଣିକା ସମ୍ମିଳନୀ, ବକ୍ଷିପ୍ରା, ପଦ୍ମମଣି ସାହିତ୍ୟ ସଂସଦରେ ପଠନ ଓ ପ୍ରକାଶିତ କରିଛି । ମୁଁ ସମସ୍ତ ଛନ୍ଦନମୁ, ଗଦ୍ୟ କବିତା, ଜାଗଯୁବାଓ କବିତା, ଲିପିବଦ୍ଧ କରିଛି । କବିତାର ନୂତନ ଦିଗଂତ ସାଂପ୍ରତିକ ଚିନ୍ତ କଳ୍ପର ସୃଷ୍ଟି ଭିତରେ ମୁଁ ଜୀଇଁ ରହିଛି ! କବିତାର ସମସ୍ତ ଅନୁଭବ ଓ ଅନୁଭୂତିକୁ ମୁଁ ଅର୍ଜନ କରିବାକୁ ଆପ୍ରାଣ ଉଦ୍ୟମ କରିଛି ପାର୍ଦ୍ଧ ଶତାଧିକ ବର୍ଷ ଧରି । ଏହି "ନଶୀଥ ସୂର୍ଯ୍ୟ" ପ୍ରକାଶନରେ ମୋର ବଡ଼ ବୋଉ ଶ୍ରୀମତୀ ଦୂଜାରା ପଟ୍ଟ (ମହାପାତ୍ର), ସାନ ପୁଅ କେଦାରନାଥ ମହାପାତ୍ର ଓ ପୋଇଁପୁଅମାନେ ଶ୍ରୀ ଭଞ୍ଜଚରଣ

ଷଣ୍ଡା, ବିଶ୍ୱନାଥ ବ୍ରହ୍ମାଙ୍କର ସମସ୍ତ ସହଯୋଗ ବିଶେଷ ସ୍ୱାଗତ ଯୋଗ୍ୟ । ଗୁରୁଦେବ ୬ କପିଳେଶ୍ୱର, ଶ୍ରୀ ଦାଶରଥୀ ପଟ୍ଟନାୟକ, କବି ବ୍ରଜସୁନ୍ଦର ପଟ୍ଟନାୟକ ସର୍ବଦା ଏ ଶାଶ୍ୱତ ସୃଷ୍ଟି ପାଇଁ ପ୍ରେରଣା ଦେଇ ଆସିଛନ୍ତି । ସର୍ବୋପରି ମୋର ଧର୍ମପତ୍ନୀ ଶ୍ରୀମତୀ ବାସନ୍ତୀ ମହାପାତ୍ର ଅଗ୍ନିଦଗ୍ଧ ଜୀବନ ଭିତରେ କାବ୍ୟ ପୁସ୍ତକର ଜୀବନ ଜାତକରେ ସମସ୍ତ ସହଯୋଗ, ସାହଚର୍ଯ୍ୟ ଦେଇ ଆସିଛନ୍ତି । ନଚେତ୍ ମୋର କବି ଜୀବନ ସୃଷ୍ଟି ହୋଇ ପାରି ନ ଥାନ୍ତା । ଏ ସମସ୍ତ ପାଣ୍ଡୁଲିପିର ଅନ୍ତର୍ନିହିତ ସମାଲୋଚନା ସୃଷ୍ଟିରେ ସୌଷ୍ଠବମୟ କରିଥିବା ବରେଣ୍ୟ ପ୍ରାଧ୍ୟାପକ ଭଂଜ ବିହାର ବ୍ରହ୍ମପୁର ଗଂଜାମ ଶ୍ରୀ ବାଜୁଷିବଂଧୁ କରଙ୍କୁ ଶତଧନ୍ୟ ଓ ସାଧୁବାଦ ।

ସନ୍ନିବେଶିତ କବିତାରେ ବିଶ୍ୱନେତ୍ରୀ ୬ ଇନ୍ଦିରା ଗାଂଧୀଙ୍କ ଠାରୁ ଆରମ୍ଭ କରି ଉତ୍କଳ କେଶରୀ ଡ଼ଃ. ହରେକୃଷ୍ଣ ମହତାବ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ମଧୁସୂଦନ ମହାପାତ୍ର, ବ୍ୟାପି ମୂଳାଅର କବି ୬ ବନମାଳୀ ମହାରଣା, କଥା ସମ୍ରାଟ ଏ ଶତକର ୬ ସୁରେନ୍ଦ୍ର ମହାନ୍ତି, ସାହିତ୍ୟିକ କପିଳେଶ୍ୱର ଦାସ ପ୍ରଭୃତିଙ୍କର ଜୀବନଧର୍ମୀ କବିତାରେ ସ୍ୱତନ୍ତ୍ର ମୂଲ୍ୟାୟନ କରିଯାଇଛି ।

ଚଉଦ୍ଦେଶ୍ୟରେ ଅମର ପ୍ରେସ୍ର କର୍ମକର୍ତ୍ତାଗଣ ଠିକ୍ ସମୟରେ ବହୀକୁ ସୁପାଠ୍ୟ ପାଠକଙ୍କୁ ଅଣିଥିବାରୁ ତାଙ୍କ ପାଖରେ ଏ ଅଧମ କବି କୃତଜ୍ଞ ।

ଇତି

ଆପଣଙ୍କର ଗୁଣମୁଗ୍ଧ ବନ୍ଦିତ କବି

**ଶ୍ରୀ ଉଦୟ ନାଥ ମହାପାତ୍ର**

ସ୍ୱର୍ଣ୍ଣମୟୀ ନଗର-୨, ବ୍ରହ୍ମପୁର (ଗଂଜାମ)

ତା:- ୨୮-୩-୯୯

## ଉତ୍କଳ କେଶରୀ ଡ଼କ୍ଟର ହରେକୃଷ୍ଣ ମହତାବଙ୍କ
## ଉଦୟଙ୍କ ନିକଟକୁ ପତ୍ର

ତା ୧୨-୫-୭୭

ଶ୍ରୀମାନ ଉଦୟନାଥ,

ତମର ତା ୧-୪-୭୭ରେ କଣ୍ଠରୁମୂର୍ତ୍ତି ପତ୍ର ପାଇଲି । ମୁଁ ଅନୁଷ୍ଠାନର ସର୍ବ ସାଫଲ୍ୟ କାମନା କରେ । ସାହିତ୍ୟ ସାଧନାରେ ଯେଉଁମାନେ ବ୍ରତୀ ସେମାନେ ପରମେଶ୍ୱରଙ୍କ ଆଶୀର୍ବାଦ ଲାଭ କରନ୍ତୁ ।

ତୁମର
**ହରେକୃଷ୍ଣ ମହତାବ**

**ଶ୍ରୀ ଉଦୟନାଥ ମହାପାତ୍ର**
ସମ୍ପାଦକ
**ତରୁଣ ସାହିତ୍ୟ ପରିଷଦ**
**At/PO.** ପୁରୁଷୋତ୍ତମପୁର
ଗଞ୍ଜାମ

# ବରିଷ୍ଠ ଶିକ୍ଷାବିତ୍ କପିଳେଶ୍ୱର ଦାଶଙ୍କ ଦ୍ୱାରା ଲେଖକଙ୍କୁ ପ୍ରେରିତ ଏକ ପତ୍ର

ପ୍ରିୟ ଉଦୟନାଥ,

ତୁମର ଚିଠି ମିଳିଥିଲା । ଅସ୍ୱାସ୍ଥ୍ୟ ଓ ଝଂଝାଟ ଯୋଗୁଁ ଉତ୍ତର ଦେବାରେ ବିଳମ୍ବ ଘଟିଲା । ଅନ୍ୟଥା ଭାବିବ ନାହିଁ । ଖଣ୍ଡିକୋଟ ଜଳବାୟୁ ମୋର ଅସ୍ୱାସ୍ଥ୍ୟ ବଢ଼ାଇଲା । ପୁଣି ପ୍ରାଇଭେଟ୍ କଲେଜରେ ବର୍ତ୍ତମାନ ଶିକ୍ଷାର ସଙ୍କଟ - ବିଶୃଙ୍ଖଳା ଭିତରେ ଆମ ଭଳି ପୁରାତନ ଆଦର୍ଶବାଦୀଙ୍କ ପକ୍ଷରେ ଠିକ୍ କର୍ତ୍ତବ୍ୟ ପାଳନ ଏକ ପ୍ରକାର ଦୁଷ୍କର । ଏହିସବୁ ପରିସ୍ଥିତିରୁ ମୋର **Appointment** ମୁଁ **resign** ଦେଉଛି ଓ ଅବସର ପାଇଁ ଅପେକ୍ଷା କରୁଛି । ବର୍ତ୍ତମାନ ଦେହ ବିଶେଷ ଖରାପ ହେବାରୁ **sick leave**ରେ ଗାଁରେ ଅଛି । ଏଣିକି ଗାଁ ଠିକଣାରେ ହିଁ ପତ୍ର ଦେଉଥିବେ ।

ପଣ୍ଡିତ ଭୃଜବଳ ଆଗିଭାରେ ସମ୍ମେଳନ ହେବା କଥା ଯାହା କହୁଥିଲେ କିଛି ନିଶ୍ଚୟ ନାହିଁ । କୌଣସି ଆଉ ସେପରି କିଛି ଉତ୍ସାହ ଜନକ ପରିସ୍ଥିତି ଦେଖାଯାଉ ନାହିଁ । ତେବେ ପୁରୁଷୋତ୍ତମପୁରରେ ହେବାର **Idea** ତୁମେମାନେ ଏକାବେଳକେ ପରିତ୍ୟାଗ କରି ଦେଲକି ? ଯେତେବେଳେ ପାଞ୍ଚ ସାତ ଦିନ ଭିତରେ ସ୍ଥିର ହୋଇପାରିଲା ନାହିଁ— ବର୍ତ୍ତମାନ ପାଞ୍ଚମାସ ସମୟ ଅଛି । ଏବଂ ଏକାଗ୍ରଭାବରେ ଉଦ୍ୟମ ଓ ଆୟୋଜନ କଲେ ଡିସେମ୍ବର ଶେଷ ଆଡ଼କୁ ହୋଇପାରିବ ନାହିଁକି ? ପୁଣି ପରିଷଦ ବୈଠକ ବସାଇ ବିଷୟର ଆଲୋଚନା କରିବ । ହେବାପାଇଁ ଏତେକଥା ହୋଇଗଲା । ସ୍ଥାପନା ଆରମ୍ଭ ହୋଇ ନିମନ୍ତ୍ରଣ ପର୍ଯ୍ୟନ୍ତ କଥା ଅଛି ! ଯା'ଆସ ବୈଠକ ଇତ୍ୟାଦି ହେଲା । ସେ ବିଷୟର ପତ୍ର ଛପା ହୋଇ ରହିଛି । ଏବେ ମଧ୍ୟ ହୋଇଗଲେ ଯଶ ରହିବ । ଚିନ୍ତାମଣି ହେଲା ଲେଖିଥିଲେ ଆନନ୍ଦ ରଥେ **join** ହେଲେକି ନା ତ୍ରିପାଠୀ ଅଛନ୍ତି । ଉତ୍ତର ଅପେକ୍ଷାରେ । ଆଶା ସବୁ ଭଲ । ସମସ୍ତଙ୍କୁ ମୋର ସ୍ନେହ ସଦିଚ୍ଛା ।

ଶୁଭାକାଂକ୍ଷୀ

**କପିଳେଶ୍ୱର ଦାଶ**

# ଉତ୍କଳ ଦଧୀଚି

ଜୀବନ ଭର୍ ରସ୍ତାର
ସବୁ ଖାଲ ଢିପ
ସମତୁଲ କରି
ଫଟା ଭୂଇଁର ସବୁ ଚିତ୍କାର ଶିର୍ଧନ୍ କରି
ଅନ୍ୟ ପାଇଁ ବାଢ଼ି ଦେଲ
ଅମୃତ ମଣୋହି,
ସବୁ ହଳାହଳ ପାନ କରି
ତୁମେ ହେଲ ସର୍ବତ୍ୟାଗୀ ଶିବ,
କୁଳ ବୃଦ୍ଧ କେବଳ ଗୋଟାଏ
ଉପାଧି ଯଥେଷ୍ଟ ନୁହେଁ ।
ପର୍ଯ୍ୟାପ୍ତ ଅର୍ଥରେ ତୁମେ ଏ ଜାତି
ମେରୁଦଣ୍ଡ ଉଠାଇଛ !
କୋଣାର୍କର ମୂର୍ତ୍ତି ମାନଙ୍କ
ଭୂମିକଂପରେ ଦଣ୍ଡଭୂଜାକୁ ଜଗାଇଛ,
ଏ ଜାତି ପାଇଁ ।
ତୁମେ ଓଡ଼ିଆଣୀର ଚୌହଦ୍ଦି
କୋଟି କୋଟି ଓଡ଼ିଆ କଣ୍ଠରେ
ଏ ଜାତିର ନବ ଘୋଷ
ତୁମକୁ କରଇ ଆଜି ସମ୍ମାନ ।

—:୦:—

# ସ୍ମୃତି ସବୁ ସୂର୍ଯ୍ୟ ସ୍ନାତ

ଏ ଜାତିର ଐତିହାସିକ ଆକାଶରେ
ତୁମେ ଇନ୍ଦ୍ରଧନୁର ମହାକାବ୍ୟ,
ଏ ଜାତିର ଆଇନାରେ ତୁମ ପ୍ରତିବିମ୍ବ
ଚକ୍ ଚକ୍ କରେ,
ଏ ଜାତିର ଚନ୍ଦ୍ରଭାଗା ତୀରରେ
ତୁମେ ବହ୍ନିମାନ ସୂର୍ଯ୍ୟ !
ଓଡ଼ିଆଣୀ ପ୍ରତିଷ୍ଠା ପାଇଁ
ତନ ମନ ଦେଇ
ଏ ବିକଳାଙ୍ଗ ଜାତିଟାକୁ
ରୂପରେଖ ଦେଲ ।
ତୁମ ଶିକ୍ଷାର ମାନ ଶଂଘାର ସବୁ
ସ୍ମୃତିର ଫଗୁଳ ଫଗୁଣରେ
ଜାତିକୁ ରଂଗାପ୍ଲୁତ କରେ ।
ତୁମର ସେ ଆବକ୍ଷ ମାର୍ବଲ
ଛବିଟା
ବୈଶାଖୀର ରଡ଼୍ ନିଆଁରେ ଜଳେ
ଶ୍ରାବଣୀ ଘଡ଼ ଘଡ଼ରେ ମଜ୍ଜା ଥରପାଏ
ପୌଷର ଶୀତଳଆ ହାଓ୍ୱାରେ
ତାର ଅବୟବ ଦୋହଲୁ ଥାଏ !
ହେ ନବକୋଟୀ କଣ୍ଠୀତ
ଜନ ବର୍ଗେଶ୍ୱର,

ମୁଁ ତୁମକୁ ପ୍ରଣିପାତ କରେ,
ଏ ନାରଂଗୀ ସୌର
ରଶ୍ମିର ପ୍ରସ୍ରବଣରେ ।

—o—

## ଏ ଶତାବ୍ଦୀ ନଚିକେତା

ସମୟର ବଟବୃକ୍ଷ ତଳେ ଆସୀନ ତୁମେ
ପ୍ରଜ୍ଞା ପୁରୁଷ,
ନକ୍ଷତ୍ର ଉଜ୍ଜ୍ୱଳ ଯୁଗ ଯୁଗ ଧରି
ଚିଂତା ଓ ଚେତନାର ମୀନାରରେ ।
ତୁମ ବାଙ୍ମୟ ଶ୍ୱେତ ପଦ୍ମ
ଫୁଟିଥିବ ସୃଷ୍ଟିର
ରକ୍ତ ଗୋଲାପରେ ,
ଜନ୍ମର ଚୋପା ଆଲୁଅରେ ।
ସୃଜନର ବର୍ଣ୍ଣିଳ ଜନତା
ବେଳାରେ,
ସୃଷ୍ଟିର ଦନ୍ତୁର ମିଳନ ମଂଚରେ,
ନବ ଦିଗଂତରେ ତୁମର
କୁଞ୍ଜର ମନ୍ଦମନ୍ଦ ବାସ୍ନା
କାଳର ଲେମଣ ହାତ
ତୁମକୁ ଧନ୍ୟେ
ତୁମେ କାଳ ଜୟୀ
ଶତାବ୍ଦୀ ପୁରୁଷ ।

—o—

# ଏ ମାଟିର ସୂର୍ଯ୍ୟ

ଛୁରିଅନା ବକୁଳ କୁଞ୍ଜରେ
ତୁମ ସ୍ୱପ୍ନକୁ ସାକାର କଲ,
ସ୍ୱର୍ଗଦ୍ୱାର ଅଗ୍ନି ବଳୟ ଶପଥ
ଓଡ଼ିଆ ଜାତି ଗଢ଼ିବାର ବଜ୍ର ସଂକଳ୍ପ
ଗୁପ୍ତ ବୃନ୍ଦାବନରେ ତୋଳିଲ
ଓଡ଼ିଆର ନାଲନ୍ଦା !

ତୁମ ଉର୍ବର ଉପତ୍ୟକାରେ
ଆମେ ନାଚିଲୁ କୁଦିଲୁ,
ପର୍ଯ୍ୟାପ୍ତ ଫଳ ଫୁଲ ମହଜୁଦ୍ କଲୁ ।
ତୁମ ତୁଠ ପଥର ଖଣ୍ଡରେ
ଆମେ କଲୁ ଅଜସ୍ର ପଦାଘାତ,
ତୁମେ ସହିଗଲ ଦଧୀଚି
ନିର୍ବିକାର ହୋଇ !

ସେ ଦିନ ଲାଲ୍ କିଲ୍ଲାରେ
ଜନତନ୍ତ୍ର ତିରଙ୍ଗା ଉଡ଼ିଲା
ପାଂଚହାତ ଅପ୍ ସବୁ ଭିକ୍ଷା ମାଗିଲେ ।
ଅମୃତ ପାଇଁ ଜିଦ୍ କଲେ
ଖାଲି ତୁମେ ବିରୋଧ ଦଳର ନେତା,
ଯୋଡ଼ା ମାଡ଼ି ଚପିଲ ହାର
ତୁମ ଉପହାର,
ତୁମ ମଣିଷ ତିଆରି କାରଖାନା
ଆଜି ଶୁନ୍ଶାନ

—o—

# ଅନ୍ୟ ଏକ ମଂଚ ପଥେ

ଭିନ୍ନ ଦିଗ୍‌ବଳୟରେ ତାରକାର ମହୋତ୍ସବ
ସେଇ ରଂଗୀନ ଅତସ ବାଜି
ଅଦ୍ୟାନଙ୍କୁ
ତୁମେ ଏଡ଼ି ପାରିଲନି !
ତ୍ୟାଗୀ ଦିବାକର କର୍ମଯୋଗୀ ବୃଂଦାବନଙ୍କ
ନିମନ୍ତ୍ରଣରେ ତୁମେ ଚାଲିଗଲ ।

ଆଚରଣ ସାଧକ ବିଶ୍ୱନାଥଙ୍କୁ
ସେଇଠି ଭେଟିଥିବ ନିଶ୍ଚୟ,
ସେଇଠି ଭିନ୍ନ ସ୍ୱାଦର
ସ୍ୱାଧୀନତା ସଂଗ୍ରାମ ପାଇଁ,
ଏକ ଯୋଜନା ଖସଡ଼ା କରି,
ସାଥୀ ଜୟ ପ୍ରକାଶଙ୍କ
କ୍ରାନ୍ତିକାଙ୍କ୍ଷୀ ସବୁଜ
ବିପ୍ଳବ,
ସର୍ବୋଦୟ ସଂଗୀତ ସେ ମଂଚରେ
ଗାଇବ,
ସୃଷ୍ଟି ମୂଲ୍ୟଆର
ସାହାନାଇ ଫୁଟାଇବ ।
ମନୁଅଳି କରିବ ତୁମକୁ
ସମତାର ରଂଗୀନ ଫୁଲ

ଭୌକର ସମ୍ବୋଧନରେ
ତୁମେ ପାଗଳ ହୋଇନ,
ହେ ତରଙ୍ଗ !
କବର ପ୍ରଣତ ନଅ
ଫୁଲ ଚନ୍ଦନ ଧୂପ ନଅ ।

—○—

## ଭୂମି ପୁତ୍ର

କଳଙ୍ଗର ବର୍ଣ୍ଣାଢ୍ୟ ଶୁଭଦ ଗୌରବ
ବାଣିଜକ ବାପୁଳ ସ୍ୱର୍ଣ ମାଳା ମୋତ
ମାଣିକ୍ୟର ସମସ୍ତ ଛନ୍ଦ,
ଛନ୍ଦାର୍ପିତ ତୁମର ବାଣୀରେ ।
କଳଙ୍ଗର ଯଥାର୍ଥ ଗୌରବ
ଧ୍ୱନତ ତୁମ ଶବ୍ଦ କୋଷରେ
ମୃତ ଗୌରବର ସଙ୍ଗ୍ରାମ, ପାଲୁରୁ
କୋଣାର୍କ, ଚଲକା ପାରାଘାଟ
ହରପୁର ସବୁ ଅଞ୍ଚଳର ମଣିମୟ
ସ୍ୱପ୍ନ ।

ତୁମ ଆବେଗରେ ନର୍ତ୍ତିତ,
ଅପୂର୍ବ ସମନ୍ୱୟ ପାହାଚ,
ବାରବାଟୀ ଭଗ୍ନଚୂଡ଼ା କୋଣାର୍କ
ମୁକୁନ୍ଦଦେବ ଖାରବେଳ

ମଳଚନ୍ଦ୍ର ଚିହ୍ନିତ
ପତାକା
ତୁମ ବାଦସାହୀ ସ୍ୱପ୍ନ ।
ଏ ଜାତିର ମାନସରେ ସ୍ୱପ୍ନାପ୍ଲିତ ହୁଏ ।
ଶୈଳ୍ପିକ କୋଣାର୍କ
ସୃଷ୍ଟିତ ହୁଏ ତୁମ କଳ୍ପନାର ଗନ୍ତାଘରେ,
ଜନ୍‌ଜନ ଏଗ୍‌ ବନ୍ଦର୍‌ରେ
ପ୍ରଗତିର ରଥଚକ୍ର ।
କଳଙ୍କର କସ୍ତୁନ ପାଠବସ୍ତୁ
କଳଙ୍କର ପୁରସ୍କାର
ସବୁ ସ୍ୱଭିମାନ
ପ୍ରାମାଣିକ ଶବ୍ଦ,
ଏ ମହାଜାତିର ତୁମ ଅଭିସ୍‌ପାର ସାହଜନ୍ୟ
ହେ ଅମୃତ ସନ୍ତୁଷ୍ଟ ।

—o—

## ତୁମେ ଆସିବନି

ମୁଁ ଖୋଜୁଛି ତୁମକୁ ମୋ ସ୍ମୃତିର ବେଳାରେ
ଚୁଣି କଲ୍ୟା ବାଲିଧାରେ,
ତୁମେ ଏବେ ଦେଖୁଥିବ ନାଟ୍‌ଚନ
ରଣାଂଗନେ,
ଘୋଡ଼ା ଦୌଡ଼ !

ମାଲ ପାଣି ଢାଳିବାର
ଝଡ ଝଡ ଟୋପା ଢେରେ
ଛଟି ଯାନ୍ତୁ ।

ଯାଯାବର ହୁଏ ସେଠ୍ ,
ଭୂମ ସଜମାଡ ଢାଙ୍କି,
ଅବସ୍ଥିତି ନାହିଁ,

ଛକା ପଂଝା ଜାଳ ଢାଲ
ଲଢ଼ିବା ଗଢ଼ିବା ନାହିଁ !
ଟ୍ୟୁସ ଟ୍ୟୁସ ହୁଏ ଗ୍ରାହକମାନ ।

ଗାଂଧୀ ହତ୍ୟା ହୁଏ
ଢଚ୍ ବଜାରରେ
ଅଣ୍ଡ ଏଠି ସୁଭାଷ ମାର୍ଚ୍ଚ । ସୁଭାଷ
ତୁମେ ଆଫ୍ରିକା ଗ୍ଲାଣ୍ଡ ଢାଣ୍ଡିଙ୍ଗରେ
ଚୁଡ଼ାକୁ କହବ
ଅହିଂସା ମଣ୍ଡଳ ଏଠି ।

—o—

# କଥାକାର ସୌଦାଗର

ସବୁ ଅଲୁଅ ଲିଭେଇ ଦେଇ
ଗଗନର ଶୂନ୍ୟ କରିଦେଇ
ପ୍ରାଣ ପକ୍ଷୀ ଉଡ଼ିଗଲା
ଦେହ ଦେହଳକୁ ବାଦଦେଇ
କଥାକାର !

ଗଢ଼ିଦେଇ ଅର୍କ କ୍ଷେତ୍ର
ଓଡ଼ିଆର ସାରସ୍ୱତ କ୍ଷେତ୍ର,
ଭୂମିରୁ ଭୂମା ଯାଏଁ
ନଚିକେତା ତୁମେ,
ସାହିତ୍ୟରେ ବହୁତ ସଂଭୂକ
ଖୋଲିଲ !

ଶ୍ୟାମଳିମା ଉପତ୍ୟକା
ସବୁ ତୁମର କାଳଜୟୀ
ସ୍ମାରକ,
କଥା ସମ୍ରାଟ ଆଜି ନାହାଁନ୍ତି !
ଓଡ଼ିଆ ଖୋଜୁଛି,
ତୁମ ଭଳି ଶୈଳୀକୁ
ଭଦ୍ରତାର ସବୁ ପନ୍ଥ ସବୁଜିମା
ତୁମ ଠିକଣା ପହଞ୍ଚୁଛନ୍ତି
ଶତାବ୍ଦୀର ବାଣୀ ମହାଦାସ

ସେଦ୍ଧ "ସାରସ୍ୱତ କୃଷ୍ଣ ଚନ୍ଦ୍ରା"
ଗୁମ୍ଫର ଦ୍ୱାଅନ୍ତ,
ସ୍ରଷ୍ଟାଙ୍କୁ ସାରସ୍ୱତ ପ୍ରଣାମ
ଜଣାଂଉ,
ଫୁଲସବୁ କାଂଦୁଛନ୍ତି
ଓଡ଼ିଆ ଡାକୁଛି ଆଜ,
ଆସ, ଆସ ଆକାଶର
ନଳୀମାରୁ,
ପ୍ରଭାତ ଧ୍ରୁବ ତାରାରୁ
ସୂର୍ଯ୍ୟର ପ୍ରଭାତୀ ନାରଂଗୀରୁ,
ଶରତର ବର୍ଣ୍ଣୋଜ୍ଜ୍ୱଳ
କାଶତଣ୍ଡିରୁ !



## ଜୁହାରୀ

କୁଆଁ କୁଆଁ ଶବ୍‌ଦ ବ୍ରହ୍ମରୁ
ଚଷ କଲୁ ଧଡରେ
ସବୁକୁ ଜୀବନ୍ୟାସ ଦେଇଛ,
ଜଗାକୁ ବ୍ରଖଣ୍ଡେ ଯାଗା ମାଗିଛ
ଶିଳାରୁ ଶାଳଗ୍ରାମ ପର୍ଯ୍ୟନ୍ତ
ସବୁ ଭୂଜ କୂଜ ;ତାରଙ୍କୁ
ରୂପ କଲୁ ଦେଇଛ ।
କଲ୍ପନାର ସଜାବ ଭୂଳୀରେ

ଯେବେ ଦାରୁ ଜଙ୍ଗଲେ
ପଂଜାବ ପ୍ରାନ୍ତରେ
କାଶ୍ମୀରରେ ତାଜା ରକ୍ତର
ସୁଅ ଛୁଟିଛି
ତାକୁ କଟକରେ ମୁକାବିଲା କରୁଛ !
"ମୁଶାଏରେ" ତୁମର ପ୍ରତୀକ
ମସଗୁଲ୍ କରିଦିଏ !
"ସ୍ୱାଲ୍ମୀ ଧାଗ"ରେ ତୁମ
ସଚ୍ଚା ମଣିଷର ଗଂଧ
ଅମେ ପାଉଁ,
ତୁମେ ଷ୍ଟେସନରୁ
ମିଶି ଯିପି ଗଲଣି

କଟକରେ
ତାକୁ ଏ ଜାତ ସାଇତ ରଖିବ ।
ତୁମଠିଁ ବଡ଼ ପଣ୍ଡ୍ରାଚ୍ୟ ନାହିଁ
ତୋଲପିଠା ବଙ୍କାପନ ନାହିଁ,
ତୁମେ କେବଳ ନସ୍ୱର କଣ୍ଠିଏ
ଜଗନ୍ନାଥ ଦେଶର !
ସତ୍ୟଧାମ ଶାବାଙ୍କର ଘର ତୁମେ !
ମୋର ସୁହାସ୍ୟ ନଅ
ହେ ନସ୍ୱର କଟ !

—୦—

# ତର୍ପଣ

ମନ୍ତ୍ରର ଯାଦୁ ବଳରେ
ବାଂଘ ନୃଦନ୍ତ ଆପଣ,
ଶକୁନୀର କରେ ବାର ସ୍ୱୀକାର
କରନ୍ତିନ କେବେ,
ବାଣିଜକ ଗୁକଟର୍କ୍ୟ ସହ୍ୟଚାର
ନାଲିଫିତା କାରବାରରେ
ନିତାନ୍ତ ଅଯୋଗ୍ୟ ଥିଲ
ଜୀବନ ଚର୍ଯ୍ୟାରେ,
'ମୁଁ' ନଜର ତ୍ରୋଲପିଠା
ବନ୍ଧପନରୁ ମୁକ୍ତ ଆପଣଙ୍କ
ଚିନ୍ତନ
ନିହୁତା ଦାର୍ଶନିକ ଟିଏ ।
ଭୂମିରୁ ଭୂମାକୁ ଦେଖିବ
ସ୍ୱପ୍ନ ଆପଣଙ୍କର
ବେଦର ସୁବୋଧ ଛନ୍ଦଟିଏ
ଆପଣ,
ଉପନିଷଦ୍ ସୂକ୍ତ ସବୁ
ଫେଣେଇ ଫେଣେଇ
ଏ ଜାତିକୁ ଦେଲ
ପଞ୍ଚମ ବେଦ
ଏଇ ସୃଜନର ଅବସରରେ
ଅମୃତ ବାଣ୍ଟୁଛ ଆଜ

ତୁମ ନାମିତ ସତ୍ତ୍ୱମଣି ନିଳୟୁ
ନଗରି ଜ୍ୟୋତି ହେଉ,
ସୃଷ୍ଟିର ଆଖିରେ ଝଲମଲ
ହେଉ,
ଏଇ କୋଦଳା ସାରସ୍ୱତାଳୟ ।

—o—

# ଦୁଇବୁନ୍ଦା ଅଶ୍ରୁ ବିସର୍ଜନ

ଜୀବନରେ ଶତ ଲାଞ୍ଛନା ବହି
ଦାବିରେ ଢାଳିଲ ପ୍ରାଣ

ସେହିଲ ଶତ ପତିତ ଜନତା ଜନମ ଉଦ୍ଧାରଣ
ଗାନ୍ଧୀର ଗ୍ରାମ ସ୍ୱରାଜ ବାର୍ତ୍ତା ପ୍ରଚାରିଲ ଗାଳାଗରେ
ଏ ମହାଜାତିର ମହାପାପ ସତେ ଲିଭିଗଲା
ଅବହେଳେ ।

କାଳଜୟୀ ତୁମେ ପୁରୁଷୋତ୍ତମ ଧ୍ୟାନ ଜନତାର
ବଂଧୁ
ମୁଗ୍ଧ କରିଛ ଶାଶ୍ୱତ ମାନସ
ସାହିତ୍ୟ ରସାଳ ସିନ୍ଧୁ ।
ଲୁବ୍‌ଧକ ସମ କାଟିନାହଁ କାଳ
ଶତ୍ୟା ଶତପ୍ରେ ଜଡ଼
ସାଧନାର ଶତ ସମାଧି ଚକ୍ର ସିଦ୍ଧି ପଡ଼ିଲ ଝରି !

ଏ ଜାତର ମହାଶିକ୍ଷା ଦେଲେହେଁ ତ୍ୟାଗର
ମହାନ ମନ୍ତ୍ର
ଗବେଷକ ତୁମେ ତୋଳିଲ କୋଣାର୍କ
ମଣି ମୁକ୍ତା ଝଲ୍ଲାଜତ ।
ସନ୍ଧାନ ଦେହେ ଅଜ୍ଞାତ ସେତ୍ତ ଉତ୍କଳର
ଇଷ୍ଟ ବୃଦ୍ଧି
ଶାଶ୍ୱତ ସବୁ ପଲ୍ଲୀ ସଚପୂନ
ଜଳ ଖିପ୍ତ ପଶ୍ରୋଧ ।
ସବୁ ତବ ଶାଶ୍ୱତର ଅମର ଅକ୍ଷୟ ।
ହେ ସାଧକ ବାଣୀ ବରପୁତ୍ର
ପାବଣରେ ତୁମେ ଗଲ ସ୍ୱଲ୍ଲ ବଜପୁର
ନବବାର୍ତ୍ତା ଧର,
"ଉତ୍କଳର ଦଣ୍ଡ" ତୁମ ପାଇଁ
ଗାଉଥିବେ ସ୍ୱାଗତିକା ଗର
ପୁଣି କେବେ ଆଗମନ ବାଣୀ ସୁଚ ଚନ୍ଦର ଦ୍ୱୃତ୍ତେନ
ଆସେ ତଣ୍ଡଧର !
ହେ ସ୍ରଷ୍ଟା ହେ ଦ୍ରଷ୍ଟା ତୁମେ
ଉତ୍କଳର ନବ ଦିଗନ୍ତର
ତୁମ ପାଇଁ, ତୁମ ପାଇଁ, ଦୁଇ
ତୁନ୍ଦା ଅଶ୍ରୁ ବିମୋଚନ

—o—

# ଚନ୍ଦ୍ରସ୍ନାନ୍

ଚନ୍ଦ୍ର ସ୍ନାନ୍
ତୁମ ପ୍ରୀତିର ସ୍ୱୈର
ଦନ୍ତଚକୁ ଦେଇଛ ଜ୍ୟୋଚନା

ଝୁଣ୍ଟୁଛି ଆଜ ନିରଞ୍ଜା ତୁମ ପାଇଁ
ବେଦ ବେଦାଙ୍ଗର ଯେତେ ମନ୍ତ୍ର ଦେଲ
ଅପବର୍ଣ୍ଣ ପାଲଟିଲେ ଦୁଂଡୂପା ଢାଡୁଗା

ସାମନ୍ତ ଶିକାରର ଟୁକୁରୁ ଟୁକୁର କରି
ରକ୍ତର ସାମ୍ୟ ଗାଜ ଭୋଳଲ ।
ତୁଷାର ଦାଣ୍ଡୁରେ
ଓଁ କାରର ଆଶୋବଣ

ବୋଳିଦେଲ ମମତାର ମଲମ୍
ଫୁଲର ମହକ
ସେମାନେ ବନ୍ଦନା ଦେଲେ
ପ୍ରୀତିର ପାବଣ ।

ତୁମ ମୂର୍ତ୍ତି ଅଭିଷେକ ହୁଏ
ସଂସ୍କାରିତ ଅମ୍ବା ତୁମ ଯେଉଁଆସେ
ମାନବର ଦେହେ
ହେ ବୁଦ୍ଧର୍ଷି ଜାତସ୍ୱର
ଶ୍ରାବଣର ରୂପାନ୍ତରିତ ଗଜଲ୍ ।

—○—

# ଏ ଜାତିର ବିଦଗ୍ଧ ବାଲ୍ମିକି

ଏ ଜାତିର ବିଦଗ୍ଧ ବାଲ୍ମିକିଙ୍କ
ତାରୁଣ୍ୟ
ତୁମ ଆଖିରେ ଏ ଓଡ଼ିଆ ଦେଖିଛି,
ସତ୍ୟବାଦୀର ତୁରଙ୍ଗନା କନ୍ଦରୁ ତୁମେ
ଭଲ ମଣିଷର ସ୍ୱପ୍ନ ଦେଖିଥିଲ !

ତାଙ୍କୁ ରୂପଦେଲ କଲ ସବୁଜମାରେ,
ମାଟ ଲୁଣିଜଣ ସାର ଓଡ଼ିଆ
ତୁମେ ଗଢ଼ିଲ ଆଜି ଏକ ସାହିତ୍ୟର
ମୁଖଶାଳା 'ସବୁଜ ଯୁଗ'
ବିଶ୍ୱଜନ ମାନସରେ ଏ ଜାତିର
ବାଙ୍ମୟ ଚିତ୍ର ।
ତୁମେ ନେଇଥିଲ ଆଗ୍ନେୟ ଶପଥ

ବିଶ୍ୱସ୍ତରେ ପ୍ରତି ଓଡ଼ିଆର ରକ୍ତ ବିନ୍ଦୁ ଦାନ
ସେ ଝଂକାର ଶୁଣା ଆଜି ଯାଉଛି
ଗୁମୁରି ଗୁମୁରି ସାରଙ୍ଗୀ ବାଜୁଛି
ଖୁବ୍ କରୁଣରେ
ଏ ଜାତିର ସ୍ରଷ୍ଟା ତୁମେ ଶେଷ ଶିଖା
ଏ ଜାତିର ମାନସରେ ତୁମେ
ଚିର ବିଷ୍ଣୁ ବସଂତ ।

—o—

## ଅମ୍ଳାନ ପ୍ରତିଭା—
## କବିରାଜ ପାଠୀ ଶର୍ମା

ଧାଣ୍ଡି ଧାଣ୍ଡି ବେଦ ବେଦାଙ୍ଗର
ନିର୍ଯ୍ୟାସ
ଆହାର, ବ୍ୟସନ, ନିଦ୍ରା ସବୁ ତ୍ରୁଟି
ଜୀବନ ଚର୍ଯ୍ୟାର
ପର୍ଯ୍ୟାପ୍ତ ସଂଯୋଗ,
ସୂର୍ଯ୍ୟାସ୍ତରେ ପଦ୍ମୀ
ପାଣେ ବୋଧିବାକୁ
ନାଦାନ୍ତ ସଙ୍କେତ !

ଗଦା ଗଦା ବସ୍ତ୍ର ଓଲଟାଇ
ଜ୍ୟୋତି ରଙ୍ଗ ଜୀବନର
ଦୃଢ଼ ରସାୟନ
ଗଢ଼ିବା ପ୍ରସାର ପ୍ରସ୍ତର
ଅନୁଶାସନର ସ୍ୱତ୍ତ୍ୱ
ଭୂମ ଦକ୍ଷା !
ବନୌଷଧି ଗନ୍ଧବର୍ଣ୍ଣ
ଦେଇ
ବୈଦରାଜ ହେଲ୍‌ପରେ
କବିରାଜ କାବ୍ୟର ମନୀଷା
ଓଡ଼୍ ଚନ୍ଦ୍ର ଭେଦ ପାଇଁ
ସଂଗ୍ରାମ କରଛ !

ସମାଜକୁ ତୋଳିବାକୁ ସର୍ବାଙ୍ଗ ସୁନ୍ଦର
ଯୌବନର ଫେନିଳ ଚଞ୍ଚଳ ଯେତେ
　　ଉଦ୍‌ଗ୍ରୀବ ତୁମ କରଣୀରେ
ସାର୍ଥକ ସମାଜ ହେଉ
　　ତୁମର ଅଭୀପ୍‌ସା !
ଘଟାନ୍ତର
　　ଭେଦ ମଘର୍ଷର
　　ବିପୁଳାପ୍ଲାବନର
ଅନ୍ତର ସ୍ପନ୍ଦନ
　　ସଞ୍ଚାର
　　ହୃଦ୍‌ର ସର୍ବସ୍ୱ ।

—o—

# ସେ ସ୍ମୃତିର ଧ୍ରୁବ ତାରା

ନିଶିଗଂଧାର ମୁଠା ମୁଠା ବାଢ଼ିଂଦ୍ରୁ ଛଡ଼
ତୁମ କବିତାରେ,
ତା'ର ମୂଲ୍ୟ ଆମେ ଦେଇନୁ ।
ସ୍ୱାର୍ଥର ମରୀଚିକା ଆମକୁ ଘାରିଛି
ଆମେ ତୁମ ଶାଶ୍ୱତ ତପସ୍ୟାକୁ ସମ୍ମାନ ଦେଇନୁ !
ଜନଗଣ ସଂଗଠନ ପାଇଁ
ତୁମେ ଥିଲ ଜାଗ୍ରତ,
ଢାଁଗା ଢାଁଗା କଣ୍ଠ
ପ୍ଲାବକ ସାଜନ !

ସାରଳା ସରସ୍ୱତୀ ପୁରସ୍କାର
ମାଗିନ ।
ତୁମ ସରଳ ନିରଳସ ନିରଭିମାନୀ ଜୀବନ
ଚର୍ଯ୍ୟାର ଭିତରେ ଖୋଜାର ନୂତନ
ଦିଗଂତ ।
ଅନ୍ୟ ଏକ କୋଣାର୍କ ଏ ଜାତି ଦେଖିଲାନି ।

ତୁମେ ବାଣୀ ମନ୍ଦିରର ମୁଣ୍ଡ ମାରିଗଲ
ହେ ଦଧୀଚି ।
ତେଣୁ ତୁମେ ନନ୍ଦନର ଗଂଧ ଧରି
ଅବତୀର୍ଣ୍ଣ ହୁଅ ଆକାଶରେ,
ଇତିହାସ ସ୍ୱର୍ଣ୍ଣ ପୃଷ୍ଠାରେ
ତୁମ ନାମ ସାଇତି ରଖିଛୁ,
ଆଜି ତୁମେ ମା' ଅନ୍ନପୂର୍ଣ୍ଣାଙ୍କ ଅକ୍ଷମାଳ ଧରି
ଶ୍ୟାମାକାଳୀଙ୍କ ପିଠ ରୁ ବୋଲଦିଅ ।

ଦଗ୍ଧପ୍ରାନ୍ତ ଜାତିର ମଥାରେ,
ଓଡ଼ିଆ ପ୍ରଚଣ୍ଡ ଗ୍ରୀଷ୍ମମାନେ ହେଲେ,
ଚିର ନର୍ତ୍ତକ ହେଲେ ।
ତୁମପରି ଅଗ୍ନି ବଳୟରେ ତପସ୍ୟା କରୁ
ମାତୃ ଭାଷାର ସୁରକ୍ଷା ପାଇଁ,
ସଂସ୍କୃତିର ସଂରକ୍ଷଣ କରୁ,
ବୀର ଓଡ଼ିଆ ।
ସେଦିନ ତୁମ ସ୍ୱାଗତର ସାର୍ଥକତା ହେବ ।

ଉଜ୍ଜ୍ୱଳ ତୁମ ଗଳାରେ ପିନ୍ଧାଇ ଦେବେ
ମୋତି ମାଳା
ଏଣୁପରି ଅଶ୍ରୁ ଆଉ ବାରବାର
ଏ ଜାତିର ଉଦ୍ଧାରଣ ପାଇଁ ।

—○—

## ଋତୁମତୀ ବର୍ଷା

ବର୍ଷାକୁ ଲେଖିଛି ପତ୍ର
    ଆକାଶର ଘନାଳି ଦୂତକୁ,
ବର୍ଷା ଏବେ ଇଚ୍ଛାବଶ ନଈଟିଏ
    ବହିଯାଏ ।
ଘନ ଦଇଁ ଆଣେ ଯେତେ
    ଚୌଦିଗ ଗାଅଂଛ,
ବର୍ଷାର ଗଜଲ ଛୁଟେ
    ସାନ୍ତୁବଣ ବେଂଗ କଂଠେ,
ରଜଦୋଳିରେ କୁଆଁରୀ ମାନେ
    ନାଚଂତି କୁଦଂତି ।
ମଲୁଆଳୀ ନୃତ୍ୟାଂଗନା ପରି !
ଏ ଆଷାଢ଼ୀ ମେଦୁରିତ ମଲ୍ଲାରରେ,
କୁନା ମୁନା କାଗଜ ଡଙ୍ଗା
    ଭସାଂତି ମଜ୍ଜନରେ,
ଭୁରୁ ଭୁରୁ ଏ ମାଟିର ବାସ୍ନା
    ଖୁବ୍ ମୁଜଫୁମ୍ ଲାଗେ ।

ଗାଳ ଛକୁ କୁଡ଼ କୁଡ଼
ଏ ବରଷାରେ ଝରି ପଡ଼େ ।
ଭଙ୍ଗା ଖଟିଆରେ କେତକର
ସ୍ୱପ୍ନ ଗାଡ଼ ଏବେ ଆସିଲଣି
ଟ୍ରଙ୍କ୍ ପଠା ଧର ସ୍ୱପ୍ନ ପାଣୀ
ଷ୍ଟେସନ୍‌ରେ ଲଗାଂଶ ଭିଡ଼ ।

—୦—

## ଶହୀଦ୍

ବସ୍ତ୍ରର ରଙ୍ଗ ସବୁ ଫିକା ଫିକା ଦିଶେ,
ଠିକ୍ ମନ୍ଦ ପଶ ପର
ଏବେ ଝଲମଲ ହୁଏ ଯେତେ ଶହୀଦ୍‌ର
ରଂଗ ବେରଂଗ ନାମ
କାଂଥରେ ବାଡ଼ରେ
ନିର୍ବାଚନ ଲଢ଼େଇ ଏବେ ମାତ୍ର ଅଛି
ଆମେ ଆସ ସେମାନଙ୍କର ମୂର୍ତ୍ତି ଗଢ଼ି ଦେବା
ଧୂପ ଦେବା, ଦୀପ ଦେବା ମାଲ୍ୟାର୍ପଣ ଦେବା
ଆଖିର ବୁଂଦା ବୁଂଦା ଲୁହରେ ।
ଭିଜେଇ ଦେବା ମଞ୍ଚକୁ ।
ବିଶ୍ୱାସର ନିଶ୍ୱାସ ଏଠି ନାହିଁ
ମରିଯାଏ ଗାଳପର ଆଶାର ମିନାର
ଗଣତନ୍ତ୍ର ବନ୍ଧୁ ଭୂପଙ୍କର ଏଠି
ଅନେ ନିଶା ପାଳନ କରୁଛୁ
ପଞ୍ଚ ତାରକାରେ,

ଗାନ୍ଧୀଙ୍କୁ ଆମେ ତଳେ ତଳେ
ହତ୍ୟା କରୁଛୁ
ଦିବାଲୋକରେ ।
ଏ ଆମର ବୃହତ୍ତମ ଗଣତନ୍ତ୍ର ରାଷ୍ଟ୍ର
ଭୂମାର ତୋରଣ ବାନ୍ଧି ଏଠି
ସୂର୍ଯ୍ୟ ଏଠି
ଅଜ ଅମୃତର
ରଂଗ ବେରଂଗ ଫଗୁ ଝଂଝୁ ବାନ୍ଧି
ଏଠି ଭଥା କଥାକେ
ଝୁସ ଝୁଲେ
ଭୂଷା ଭୂଷି ।

—॥୦॥—

## ଗଜାଆ

ମନ୍ଦ ସାପ ଝୁଣ୍ଡ ଝୁଡ଼ ମନ୍ଦ ବେଂଗ
ଡେଁ କାଆଁ
ହେଉଛନ୍ତି,
ଅଦ୍ଭୁତ ଅମ୍ବାର ଚତ୍କାର ଶୁଭୁଛି,
ହସୁଛଂନ୍ତି କାଂଦୁଛଂନ୍ତି
ପେତନୀ ସବୁ ।
କଳା ରାତେ ଧ୍ୱଂସର ଇଲାକାରେ
ଚଳମାନ ଶବ ସବୁ ଜଣା
ହେଉଛଂନ୍ତି ।

ଗଣତନ୍ତ୍ରର ଅବକ୍ଷୟ
ସମାଜର ଷଡ଼ଯନ୍ତ୍ର
ସୋପାନ !
ଅଖିରୁ ମିଛ ଲୁହ ଢାଳି
ନେତାମାନେ କାଂଦୁଛନ୍ତି,
ଶକୁନିର ମୁଖା ପିନ୍ଧି
ଦଶମିଶ୍ର ଯେତେ ।
ମାଇକ୍‌ରେ ସାମ୍‌ନାରେ
ଖାଲି ଧୂଆଁ ବାଣ !
ସବୁ ଫାଙ୍କା ଆବାଜର ଇସ୍ତାହାର
ଭାସି ଯାଉଛି ଓଡ଼ିଶାର ବର୍ତ୍ତମାନ
ଅତୀତ ଭବିଷ୍ୟତ
ବନ୍ୟାର କରାଳ ଗ୍ରାସରେ !
ଜଗନ୍ନାଥ ଦେଶର ଭାଗ୍ୟ ।

—o—

# ଆମେ ହିନ୍ଦୁ ଆମେ ମୁସଲମାନ

ଆମେ ହିନ୍ଦୁ ଅମେ ମୁସଲମାନ
ଆମେ ବୌଦ୍ଧ ଅମେ ଖ୍ରୀଷ୍ଟିୟାନ,
ଅମେରେ ଛତେନ୍ଦ୍ରଙ୍କ ଯୋଗ୍ୟ ଦାୟାଦ,
ଆମେ ମହାଭାରତର ସଂତାନ

ଆମେ ବାପୁଜୀର କରୁ ଅହିଂସା ପ୍ରଚାର
ସୁଭାଷଙ୍କର ଆମେ ଯୁଦ୍ଧେ ଅନୁସାର,
ଯୁଗ ଜ୍ୟୋତି ଜବାହାର ଆମ କର୍ଣ୍ଣଧାର

ଆମେ ଭାରତର ସବୁ କୀର୍ତ୍ତିବାନ
ଆମେ ଗ୍ରହ ଗ୍ରହାନ୍ତରେ ବୁଲୁଛୁ ଏଥର
ଲଂଘିଛୁରେ ଆମେ ଜଳ ପାରାବାର ।

ଆମେ ହିମାଦ୍ରୀ ଶିଖରେ ପୋତିଛୁ ତିରଙ୍ଗା
ଆମେ ଭାରତର ଜୟ ଜବାନ
ଜୟ କିଷାନ !

ପଞ୍ଚଶୀଳ ଆମ ପଂଚନଦର
ଗୀତା, ବେଦ ବାଣୀ କରୁଛୁ ପ୍ରଚାର ।
ରାମକୃଷ୍ଣ ବିବେକ ବାର୍ତ୍ତା ଆମର
ଏ ସମଗ୍ର ବସୁଧା ଆମ ପରିବାର,
ଆମେରେ ଭାରତର ସନ୍ତାନ ।

ଆମ ରକ୍ତରେ ଭେଦ ନାହିଁରେ
ଆମର
ବିଶ୍ୱହିତ ସଦା କରୁଛୁ ପ୍ରଚାର
ଆମ ଗଂଗା ସିଂଧୁ କରେ
ଜୟଗାନ ।

— ୦ —

# ଜଉଗଡ଼ ଦୁର୍ଗ

ତୋ ଦେହରେ ଶହୀର ସ୍ତୂପ
ସୈନ୍ୟଙ୍କ ଅସ୍ଥି ମୌର୍ଯ୍ୟିକ ଦୃଶ୍ୟମାନ ସ୍ତୂପ,
ମାଳତୀ ଗଙ୍ଗର ତଟପ୍ର
ସମ୍ରାଟର ପଦାଙ୍କ,
ଉପଗୁପ୍ତ ଦଅନ୍ତୁ ଆଦେଶ
ବୌଦ୍ଧଧର୍ମ ସମ୍ରାଟ ହିଁ କରନ୍ତୁ ପ୍ରଚାର
ମୁଁ ସମ୍ରାଟ ଅଶୋକ
ତଥାଗତଙ୍କ ଅତି ପ୍ରିୟ ଶିଷ୍ୟ,
ମୋର ରକ୍ତଠାରୁ ବେଶୀ ଅନ୍ତରଙ୍ଗ
ସଂପର୍କିତ ପ୍ରଜା ଶାସନ !
ଲୁମ୍ବିନୀ ଖାଦ୍‌ରୁ ଜୋଣୀନଗ୍ର କାଂଦୁଛି
ତୁମ ଭଗ୍ନ ବ୍ରାହ୍ମୀ ଲିପି, ଶିଳାଲେଖ
ଏଇଠି ଉତ୍ସ୍ପ୍ ନନ୍ଦ ଘର୍,
କଳିଙ୍ଗର ଅଭିଳାଷ କାହିଁ ?
କଣ୍ଟ ତପକରର କ୍ଷେତ୍ରପତ କାହିଁ ?
ଆଜ ଧର୍ମ ମହାମାତ୍ର କାହାନ୍ତି !
କାହିଁ "ସୋମପା" ଜନପଦ
ମାର୍କିନ୍‌ର ତୀବ୍ର କମାଣ ଗଂଧ ଆସୁଛି,
ପଞ୍ଚଶୀଳ ଭଜନ୍ତୁ ଚଲପୁ !
"ଦୋରମିକ" ବୌଦ୍ଧ ପ୍ରତିମା
ଟୁଟୁଛି ଅବିରତ !
ଜଉଗୁଦୁର୍ଗ !

—o—

# ଉଠ କୁନା ମୁନା ନ କର ମଠ

ଉଠ କୁନା ମୁନା ନ କର ମଠ
ସକାଳ ହେଲା ପଢ଼ିବାରେ ପାଠ ।

କୁନା, ମୁନା, ବଗିଚ୍ଚ ସେ ସୁନ୍ଦର
ଜାତ ଜାତକା ଫୁଟିଛି ମନ୍ଦାର ।

ମଲ୍ଲୀ, ମାଳତୀ ବାସ ଚହଟୁଛି
ଜାତ ଜାତକା ଆମ୍ବ ଫଳଅଛି ।

ପବନ ସେ ସୁଲୁ ସୁଲୁ ବହୁଛି
କଦଳୀ କାନ୍ଧି ସୁନ୍ଦର ଫଳିଛି ।

ଢଳଢଆ ସୁନାପତ୍ର ଦଶିଲ
ଦେଖିଲ୍ଲ ଲୋକ ମନକୁ ଲୋଭେଇ ।

ପୋଇ, କଖାରୁ ଡ଼ଂକ ମାଡ଼ିଅଛି
ବଗିଚ୍ଚରେ ବଡ଼ିଆ ଫଳ ଅଛି ।

ସାର, ଗୋବର ଖତ ଦଏ ମୁନା
ପାଣି ଢାଏ ସବୁ ମୂଳରେ ଟୁନା ।

ଟୁନା, ମୁନା ବଗିଚ୍ଚ ସେ କରନ୍ତି
ସକାଳୁ ଉଠି ଅଂକ କଷୁଥାନ୍ତି ।

—୦—

# ଶୀତ ଆସେ

ଶୀତ ଏବେ ଲକ୍ତଡ଼ ଙ୍ଗଂକୁ ଛୁ
ଶ୍ରମିକର ଉର୍ଦ୍ଧି ଶେଷ ୯ ପ୍ରହରେ
ରସ୍ତା କଡ଼ ବୁଢ଼ର ଶେଯରେ
ଶୀତ ଗାଏ ଢୋଲ ଗୀତ ଧାଗ୍ରିଂଭୀର
ତାହିଁ ବାଦ୍ୟ ବଜେଇ ବଜେଇଲେ
ତା ଦାଗିଂଜ୍ଞା ମିଶି ଜାତ ଥାଏ
ଧୋବାର ଛୁଣ୍ଡା କଚବର୍ତ୍ତୁ
ଶୀତମାରେ ଅଳସ ନଶ୍ବାସ
ଦାଉଦାଉ ଜହ୍ନେଇର ରଙ୍ଗ ନଆଁ
ଶୀତ ଭୁଲେ ଏବେ ସମଂଧ୍ ହୋଇଛୁ ।
ଶୀତ ଏବେ ଆସିଗଲା
ଦାଦନ ଶ୍ରମିକ ତୁମେ
ଟ୍ରଂକ ସମ୍ଭାଳ,
ଶୀତ ଆଣେ ପୂନଅର ପୋଢ଼ ପିଠା
ମୂଆଁ ଧର ଭାକେ ଶୀତ
ଜୁନା, ମୂନା ତାର ସାଥୀ ସବୁ
ଶୀତ ଆଣେ ବସଂତ ଜଜସ୍ବ ବାର୍ତ୍ତା
ମାଳଙ୍ଗର ଗହନ ଲୁଂକନ୍ତୁ



ଚନ୍ଦ୍ରମାର ତୁଳି ଓପରେ ଲେଖିଯାଏ ଶବ୍ଦ ନକ୍ଷତ୍ର ପତ୍ରରେ,
ଅଜସ୍ର ଚନ୍ଦ୍ରରେ,
ଶବ୍ଦ ଆସିଯାଏ ମୋର ନିଃଶବ୍ଦ କଣ୍ଠକୁ,
କଟିମିଟି ଅକ୍ଷରରେ, ଆଲୋକର ବନ୍ୟା ନାଳ !
ଶବ୍ଦ ଯାଏ ଠିକ୍ ଜାହ୍ନବୀ ଧାରରେ,
ମୋର ଶବ୍ଦ ଯେବେ ଖୁଲିଯିବ ଏ ହୃଦୟ ବାହାରୁ
ଠିକ୍ ଶୁକ ପକ୍ଷୀ ପରି ଆକାଶର ମହାଶୂନ୍ୟ ଗୁହକୁ ।
ଯଉବନର ଅବର୍ଣ୍ଣ ଗାଥାକୁ ସାତ ରାଜ ପଙ୍କ ରକ୍ତରେ ମୋର
ଘନ ଇଚ୍ଛା କରି ଅଛୁ ଫୁଟିବାକୁ ? ଶାଶ୍ୱତ ଶବ୍ଦ ପାଇଁ,



## ଅନ୍ୱେଷା

ମୋର "ମୁଁ" ଅଭିପ୍ସା ମଣ୍ଡଳ
କଳାପଟା କାଗଜ ଗୁଡ଼ ସବୁ ଭୁଲିଗଲେ
ସେଇ ବୈଦିକ ଇଙ୍କାରେ "ମୁଁ"
ସେଇ ଅନ୍ତ ମାନସର ଶଙ୍ଖକୁ
ମୋର ମୁଁ ନାହିଁ ସେମିତି !
ପୁଣି ମୁଁ ଭୁଲିଆସିଲି ମୁଁରକୁ
ଶେଷ ବୃନ୍ଦର ବର୍ଣ୍ଣସବୁ ଭୁଲିଗଲେ,
କାମନାର "ମୁଁ" ଜାଗିଲା
ଓ ଦେହ ବାହାରେ ଅଜସ୍ର ଦାଗ ।

* * *

"ଅଖିଳର କୃଷ୍ଣସାର"
        କାମନାର ଅଜଗର ମୋତେ
        ଜଡ଼ିଛି ତ କଳ
ମୋର "ସାବିତ୍ରୀର" ଆଲୋକ କାହିଁ ?
ସେହି ବୈଦିକ ନଗର ନାହାଂତ
ମୋର 'ମୁଁ' ଭିତରେ
        ତଥାଗତଂଙ୍କ ଧ୍ୟାନ ମୁଦ୍ରା ନାହିଁ !
ଅଛି ଉପସ୍ଥିତ "ସାବିତ୍ର" ମାଁର କାମନା ।
ମୋ ଅଂଧ କୁଟୀର ଦେଖ
        କେଡ଼େ ନିଦ୍ରାଳୁ
ସାବିତ୍ରୀ ମା,
        ମତେ ଅଣ ମାନସକୁ
        ଆଲୋକ ଦିଅ !
ସେହି ବୈଦିକ ସହରକୁ ନେଇ ଯାଅ,
ଯେଉଁଠି ଯୁଗ ଯନ୍ତ୍ରଣା ନଥିବ
ନଥିବ କାମନାର ଦ୍ରୌପଦୀ !
ବାସନାର ଗାଂଡ଼ିବକୁ
କୋଳାଗ୍ରତ କରୁନଥିବ
ସେହି ପ୍ରଶାଂତ ଅମ୍ଭାର
ଆଲୋକ ଥିବ
        ପୁଂଜୀଭୂତ ହୋଇ
ଏକାକାର ହୋଇ ।

—o—

# ଅଭିପ୍‌ସା ସ୍ଫୁଉର

ସୂର୍ଯ୍ୟର ନୀଳ ଜବା ରକ୍ତିମାରେ
ଆଗାମୀ ଜନ୍ମର ତୋଫ ସ୍ୱପନରେ
ଧଳା ବାଦଲର ସଫେଦ ଆଲୁଅରେ,
ମୁକ୍ତିର ଆବେଗ ଧରି
ତୁମେ ହୁଏତ ଜାଗିବ ସେ ଦିନ ।
ସେହି ଶାଂତ ବନରୁ,
ବା ନିର୍ମୁକ୍ତି ଭବନରୁ,
କୋଟି କୋଟି ଜନ ମାନସର
କାରୁଣ୍ୟ ଉପତ୍ୟକାରୁ,
ଅମୃତର ସ୍ୱାଦ ଧରି
ବଂଶଦେବ, କ୍ଷମାକଳ୍ପରୁ କୁମାରିକା ଯାଏଁ,
ଅଖଣ୍ଡତା ସଂହତିର
ବେଦ ମଂତ୍ର ଉଚ୍ଚାରଣ କରିବ
ଶାଂତିର କପୋତ ଉଡ଼ାଇବ,
ସାରସ୍ୱୀ କରଣର
ନବଗୀତା ମନ୍ତ୍ରର ଜନତାକୁ
ଉଦ୍‌ବୋଧନ ଦେବ ।
ଏ ସବୁ ସ୍ୱବଣ ବଂସାସୁର
ଧୂଳିସାତ୍ ହେବେ,
ନୂଆଁ ନାରଂଗୀ ଆଲୋକର
ଓଁ କାର ଧ୍ୱନି ଉଠିବ,
ଜାଗ୍ରତର ପ୍ରଜାତନ୍ତ୍ର,
ସମୁଦ୍ର ଏକତା ଗଣ୍ଠି ବାନ୍ଧିବ,

ନୂଆ ଦିନ
ତୃଷାର୍ତ୍ତ ଜଗବଳୟରେ ସେଦିନ
ଆଉ ଏକ ପ୍ରଶାଂତ ବର୍ଷା
ମମତାର ସମତା ମୈତ୍ରୀର ଦେବ
ସହସ୍ର ଭୁଜା ସେଦିନ ଜାଗିବେ ।

—o—

## ଜୋତିଷ୍ମାନ୍

ତୁମେ ଯେଉଁ ମହାଯାତ୍ରା ଡାକଦେଇ ଚାଲିଗଲ
ଏ ଜାତିର ଅଂଗନରେ
ମାଂଗଳିକ ଗାଇଥିଲ
ଭ୍ରାତୃତ୍ୱର ସମାଚାର
ଏ ଓଡ଼ିଆ ତୁମର ସ୍ୱପ୍ନଦାନକୁ
ସେ ଦିନ ଜାଣିଛି ।
ତେଣୁ ତୁମେ ଅସ୍ପିବନ
ଜଳ ଲଗନରେ
ଏଠି ସ୍ୱାର୍ଥର ସାରଦାଶ ଖଣ୍ଡା ଝୁଲୁଛି
ଚତୁର ଖାଲି ଧ୍ୱଂସ ବାଣ ଏଠି
ଧରୁ ଅଙ୍ଗେ ଶୁଣୁଛୁ ହାଁ । ଙ୍କ, ହାଁ । ଙ୍କ
ମୂଳମନ୍ତ୍ର ସ୍ୱର
ଶବମୂର୍ତ୍ତି କାହିଁ ?
ତୁମର ବାନର ସେନା
ନାହାଁନ୍ତି ଆଜି,
କରିବାକୁ ସମତୁଳ ସମାଜର
ଥିଲ ନ ଥିଲାଭ !

—:o:—